# ଆମରି ଗାଁର କଠିଆ ବୁଢ଼ୀ

ଡଃ ମନୋରମା ବିଶ୍ୱାଳ ମହାପାତ୍ର





# ଆମରି ଗାଁର କଟିଆ ବୁଢ଼ୀ


ଡଃ ମନୋରମା ବିଶ୍ୱାଳ ମହାପାତ୍ର

ପ୍ରକାଶକ ବାସବ ମହାପାତ୍ର
ପ୍ରୀତମ୍ ପ୍ରକାଶନ
୧୨୫ ଆଚାର୍ଯ୍ୟବିହାର, ଭୁବନେଶ୍ୱର

ପ୍ରଥମ ସଂସ୍କରଣ ୨୦୦୬

ଅଳଙ୍କରଣ ତନୁଜ ମଲ୍ଲିକ

ମୁଦ୍ରଣ ଦିବ୍ୟ ମୁଦ୍ରଣୀ

ମୂଲ୍ୟ ୧୫ ଟଙ୍କା


## AMARI GAON RA KATIA BUDHI


by **Dr. Monorama Biswal Mohapatra**

Publisher Basab Mohapatra
Pritam Prakasan
125 Acharyabihar, Bhubaneswar

First Edition 2006

Layout Design Tanuj Mallick

Printed at Divya Mudrani

Price Rs.15/-

# ଆମରି ଗାଁ
# କଣିଆ ଝୁଣ୍ଟୀ





ଜଟିଆର ବୋଉ କଟିଆ ବୁଢ଼ୀ
ବୁଢ଼ା ସଙ୍ଗେ ଥରେ କଜିଆ କରି
ଜିନିଷ ମିନିଷ ବୁଜୁଳା ଧରି
ମନ କଲା ଯିବ ତୀର୍ଥ କରି ।



ଜଟିଆକୁ ଡାକି କହିଲା ବୁଢ଼ୀ
ଆଗାମୀ କାଲି ମୁଁ ରେଳରେ ବସି
ଏକୁଟିଆ ଯିବି ମଥୁରା, କାଶୀ ।



ବାପ ବୁଢ଼ା ତୋର ଗାଁରେ ରହୁ
ଖଣ୍ଡିଆ ଚାଳକୁ ମୁଣ୍ଡେଇ ଥାଉ ।

ଜଟିଆ ବାପର ମନ ବିରସ
ଭାବୁଥାଏ ମନେ ବୁଢ଼ୀଟାର
ସତେ କେଡ଼େ ସାହସ !



ଏକୁଟିଆବାରୀ ମୋତେ ନ ଡାକି
ଭାବିଚି ଫେରିବ ଗୟା ଦେଖି ।
ଗାଲରେ ଗାଲୁଏ ଜାକିଛି ପାନ
କଥା କହୁଅଛି କା'ଣ ମାଣ ।



ଭାବିଲା ମନେ
ଭଲକରି ଦେବି ବୁଢ଼ୀକୁ ପାନେ ।
ପାଇବ ଫଳ
ନାକ କାନ୍ଦୁରୀଟା
ହେବ ବିକଳ ।

ଜାଣିବ ଆପଣା ବୁଢ଼ାକୁ ଛାଡ଼ି
କେହି ଯାଆନ୍ତିନି ତୀରିଥ କରି ।




କେଇଥର ବୁଢ଼ୀ ଦେଖିଥିଲା ସିନା ମଟର ଗାଡ଼ି
ଥରୁଟିଏ ହେଲେ ଯାଇ ନ ଥିଲା ସେ ରେଳରେ ଚଢ଼ି ।



'ବାଲିଆପାଳ'ରୁ
ମଟର ଚଢ଼ି,
ବାଲେଶ୍ୱର ଯାଏଁ ଯାଇଥିଲା ସିଏ
ଚୋବାଇ ଚୋବାଇ ଗରମ ମୁଢ଼ି ।



କଣ୍ଡକ୍ଟରକୁ ପଇସା ଦେଇ
ଟିକଟ କରି ସେ
ମଟର ଭିତରେ ପଡ଼ଇ ଶୋଇ
ଠେଲା ପେଲାରେ ବି
ନିଦ ତାର କେବେ
ଭାଙ୍ଗେ ନାହିଁ ।

ବୁଢ଼ୀକୁ ଜାଣେ ସେ କଣ୍ଡକ୍ଟର
ସୁଖ ଦୁଃଖ ହୁଏ ବୁଢ଼ୀ ସାଙ୍ଗରେ
ପାଇଲେ ତର ।
କଟିଆ ବୁଢ଼ୀର ନାତୁଣୀ ଘର
ବସ୍‌ଷ୍ଟାଣ୍ଡରୁ ଅଳପ ଦୂର ।

ସେଦିନ ଆମର କଟିଆ ବୁଢ଼ୀ
ବୁଢ଼ା ସଙ୍ଗେ ବହେ
କଜିଆ କରି ।




ବାହାରିଲା ଏକା ଚଢ଼ିବ ଗାଡ଼ି
ଯିବାକୁ ପୁରୀ
ଦିନେ ଦୁଇ ଦିନେ
ଆସିବ ଫେରି ।



ଷ୍ଟେସନରେ ଯାଇ ପହଞ୍ଚି ଶୁଣିଲା ଆସୁଚି ଗାଡ଼ି
ଅଧ ଘଣ୍ଟା ଯାଇ ଘଣ୍ଟେରୁ ବେଶି ହେଲାଣି ଡେରି,
ପ୍ଲାଟଫର୍ମରେ ଛୁଆରୁ ବଡ଼ ପ୍ରବଳ ଭିଡ଼ ।
ଶୁଣିଲା ବୁଢ଼ୀ,
ଆଉରି ଡେରିରେ ଆସିବ ଗାଡ଼ି ।



ଭାବିଲା ସେଇଠି ଗଣ୍ଠିଲି ଉପରେ ମଥାଟି ଥୋଇ
କେତେ ବସିଥିବ, ନିମିଷକ ପାଇଁ ପଡ଼ିବ ଶୋଇ
ପି-ପି କରି ବେଲ୍ ମାରି
ଧକଡ଼୍ ଧକଡ଼୍ ଆଇଲେ ଗାଡ଼ି
ଉଠି ପଡ଼ିବ ସେ ଚଟ୍ କରି
ଭିତରକୁ ଯିବ ରେଲିଙ୍ଗ୍ ଧରି ।

ଗାଡ଼ି ଆସିଗଲେ କଣ୍ଡକ୍ଟର ତାକୁ
ଉଠାଇବ ନିଶ୍ଚେ ଟିକଟ ପାଇଁ
ଏଇଆ ବିଚାରି ଶୋଇଗଲା ବୁଢ଼ୀ
ମୁଣ୍ଡତଳେ ତାର ବୁଜୁଲା ଦେଇ ।

ଜଟିଆ ବୋଉ ସେ କଟିଆ ବୁଢ଼ୀ
କେହି ଦେଖିଲେନି, କେହି ଜାଣିଲେନି
ପଣତ ବିଛେଇ ପଡ଼ିଲା ଗଡ଼ି ।





ଟିକକ ଉତ୍ତାରେ ଗରଜି ଗରଜି ଆଇଲା ରେଳ
ଭୂଇଁ ଦୁଲୁକିଲା, ଚାହୁଁ ଚାହୁଁ ହେଲା ଲୋକ ଗହଳ ।
କଟିଆ ବୁଢ଼ୀ ତ ପଡ଼ିଚି ଶୋଇ
ନାକର ଡାକରେ ଆଉ ସବୁ ଡାକ
ଗଲା ମିଳେଇ ।



ଛାଡ଼ିଦେଲା ଗାଡ଼ି ଥମିଲା ଗହଳି
ଭାଜିଗଲା ବୁଢ଼ୀ ନିଦଟା,
ଦେଖିଲା ଦୂରରେ କଳାଧୂଆଁ ଛାଡ଼ି
ଦଉଡ଼ି ଯାଉଚି ଗାଡ଼ିଟା ।

କି ଭାବିଲା ବୁଢ଼ୀ ଦଉଡ଼ିଲା ଡ଼ାକି
– ଗାଡ଼ିବାଲା ରଖ ଗାଡ଼ିରେ
କଣ୍ଡକ୍ଟର ପୁଅ ମୋତେ ନ ଉଠେଇ
ଚାଲିଗଲୁ କେଉଁ ପରିରେ ।



ଗାଡ଼ି ଚାଲିଗଲା ଗାଡ଼ିର ବାଟରେ
ପଛକୁ ଚାହିଁଲା ନାହିଁ,
ଡାକି ଡାକି ବୁଢ଼ୀ ଥକିଗଲା ପଛେ
ଗାଡ଼ି ତ ରହିଲା ନାହିଁ,



ଯେତେ ଇଚ୍ଛା ସେତେ ଗାଳି ଦେଲା ବୁଢ଼ୀ
ଘରକୁ ଫେରିବ କି ନା,
ଲାଜ ମାଡୁଥିଲା ବୁଢ଼ାଟା ଆଗରେ
ଅପଦସ୍ତ ହେବ ସିନା ।

ମାଲ ଗାଡ଼ିଟାଏ ଛିଡ଼ା ହୋଇଥିଲା
ଷ୍ଟେସନର ଆର ପାଖେ
ତରତର ହୋଇ ବୁଢ଼ୀ ଚଢ଼ିଗଲା
ଖୁସି ତାର କିଏ ଦେଖେ ।



ଏଡେ ଗାଡ଼ିଟାରେ ଏକୁଟିଆ ଯିବ
କାହାକୁ ଏଥର ଡର
ଗୋଡ଼ ହାତସବୁ ଲମ୍ବାଇ ବସିଲା
ନ ହୋଇ ସେ ତରତର ।

ବାବୁ ଜଣେ ଆସି କହିଲା, ହେ ବୁଢ଼ୀ
ଏଠାରେ ବସିଛୁ କିଆଁ ?
ମାଲଗାଡ଼ି ବୋଲି ଜାଣିକି ନାହୁଁ ତୁ,
ସହଳ ଓହ୍ଲାଇ ଯାଆ ।





ବୁଢ଼ୀ ରାଗିଯାଇ କହିଲା ହେ ବାବୁ
ସବୁ ଗାଡ଼ି ଏକାପରି
ସକାଳ ପହରୁ ଆସି ବସିଅଛି
ଯିବି ମୁଁ ତୀରିଥ କରି ।।

ଲୋକଟା କହିଲା ଯଦି ଯିବୁ ତୁହି
ଯାଆ ଟିକେଟ ଆଣିବୁ କିଣି
ଗଣ୍ଠିଲିଟି ତାର ଥୋଇ ସେଇ ଥାନେ
ଗଲା ସେ ଟିକଟ ଆଣି ।



ଛକ୍ ଛକ୍ କରି ଚାଲିଗଲା ଗାଡ଼ି
ବୁଢ଼ୀର ବୁଜୁଲା ନେଇ,
ଯାହା ଘଟିଗଲା
ବୁଢ଼ୀ ନ ଜାଣିଲା
ଟିକଟ ଘରରେ ରହି ।

